# ମିଠା ଗୀତ

ଦାଶ ବେନହୁର




କାଞ୍ଚନ
ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧






ଲେଖକ

ଦାଶ ବେନହୁର

କଥାକାର-୬ମ-୧୬୧, ଶୈଳଶ୍ରୀବିହାର,

ଭୁବନେଶ୍ୱର-୭୫୧୦୨୧



ପ୍ରକାଶକ

ସନ୍ତୋଷ ପବ୍ଲିକେଶନ୍ସ

*କାଞ୍ଚନ*

ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

ଟେଲିଫୋନ୍ : ୦୬୭୧-୨୪୨୫୬୭୦

ମୁଦ୍ରଣ

ଅନ୍ନପୂର୍ଣ୍ଣା ପ୍ରିଣ୍ଟର୍ସ

ଗୋସାଣିନୂଆଗାଁ, ବ୍ରହ୍ମପୁର-୭୬୦୦୦୩

ମୋବାଇଲ-୯୮୬୧୦୧୧୩୫୬

ପ୍ରଥମ ପ୍ରକାଶ

ବିଜୟା ଦଶମୀ-୨୦୧୧

ମୂଲ୍ୟ :

ତିରିଶ ଟଙ୍କା

ISBN 978-81-86475-62-1



## କଥା ପଦେ...

ଯେଉଁ ଗୀତ ମନକୁ ଛୁଏଁ ତାହା ମିଠା ଗୀତ । ହେଲେ କେଉଁ ଗୀତ ମନକୁ ଛୁଏଁ ?

ଗୀତକୁ ଆମେ ଫୁଲ ସହିତ ତୁଳନା କରିପାରିବା । ଫୁଲରେ ଦୁଇଟି କଥା ଅଛି । ଗୋଟିଏ ହେଉଛି ତା'ର ରୂପ, ଆରଟି ହେଉଛି ତା'ର ସୁବାସ ମନମତାଣିଆ, ତାହା ସମସ୍ତଙ୍କୁ ଭଲ ଲାଗେ । ସେମିତି ଯେଉଁ ଗୀତର ଭାବଟି ଆନନ୍ଦ ଦିଏ ଏବଂ ତା' ଭିତରର ଛନ୍ଦ ଆକୃଷ୍ଟ କରେ ତାହା ଭଲ ଗୀତ ବା ମିଠା ଗୀତ ।

ଏ ସଂକଳନରେ ମୋଟେ ବାରଗୋଟି ଗୀତ ରହିଛି । ମୋର ଆଶା ଗୀତଗୁଡ଼ିକ ସମସ୍ତଙ୍କ ମନକୁ ଛୁଇଁବ ।

*– ଦାଶ ବେନହୁର*

## ଏଥିରେ ଅଛି...





# ମିଠା ଗୀତ

କଲରା ଦିନେ ଗାଇଲା ଗୀତ
ମନ ହରଷେ ବସି,
କାଙ୍କଡ଼ ଆଇ ଲୁଚିଲୁଚିକା
ଥିଇରି ଦେଲା ହସି ।୧।

କାକୁଡ଼ି ଶୁଣି କଲରା ଗୀତ
ହସିଲା ଠୋଓ ଠୋଓ,
କଖାରୁ ତା'ର ପତର ମେଲି
କରିଲା ଘୋଓ ଘୋଓ ।୨।

ବାଡ଼ିଟା ସାରା ସଭିଏଁ ଏବେ
ଋହିଁଲେ ସେଇଆଡ଼େ,
ଦେଖିଲେ ସେଠି ଋଲିଛି ପାଟି
ଶାଗ କିଆରି ବାଡ଼େ ।୩।

ପୋଟଳ, ପୋଇ, ଗୁଆଁର, ଭେଣ୍ଡି
ହୋଇଲେ ଅନାଅନି,
ମଟର, ମୂଳା, ଗାଜର, ଖଡ଼ା
ଝୁଡ୍ଙ୍ଗ ଆଉ ଲହ୍ନି ।୪।



ମୁହଁ ଶୁଖାଇ କଲରା ସେଠୁ
ରହିଲା ପୋତି ମୁହଁ,
ହସି ହସିକା ଲାଉ ପରୁରେ
କଅଣ ହେଲା କୁହ ।୫।

ଏତିକି ବେଳେ କୁନି ଝିଅଟି
ଆସିଲା ତୋଳି ଶାଗ,
କହିଲା ଦେଖ କରନା ପାଟି
ଶୁଣ ମୋ କଥା ଆଗ ।୬।

କଲରା ସିନା ଲାଗଇ ପିତା
ଗାଏ ସେ ମିଠା ଗୀତ,
ଚାଲ ସଭିଏଁ ଗାଇବା ମିଶି
ହୋଇବା ତା'ର ମିତ ।୭।

❑❑❑





# ଟିଁପା ଟିପି

ଟିପାଟିଏ ଟିପିଟିଏ
ଘରକଲେ ବଣରେ,
ଛପରଟା ଛେଇଦେଲେ
ବଡ଼ ବଡ଼ ଛଣରେ ।୧।

ଝାଟି ଆଣି କାନ୍ଥକରି
ଲିପାଲିପି କରିଲେ,
କେତେ କ'ଣ ଝୋଟିଚିତା
ଘର ସାରା ଭରିଲେ ।୨।

ଚଉରା ଥାପନା କରି
ଲଗେଇଲେ ତୁଳସୀ
ଘର ଆଗେ ବସେଇଲେ
ପୂର୍ଣ୍ଣକୁମ୍ଭ କଳସୀ ।୩।

କଣ୍ଟା ଝଟା ବୋହି ଆଣି
ବାଡ଼ ଦେଲେ ପକେଇ,
କେତେ ଭୋଜି ଭାତ କଲେ
ଘାଣ୍ଟି ସାଙ୍ଗ ଡକେଇ ।୪।

ମଣ୍ଡାପିଠା ସରପୁଳି
କ୍ଷୀରୀ ଆଉ ଖେଚେଡ଼ି,
ଆରିସା କାକରା ଲଡୁ
ବସାଦହି ପାଚେଡ଼ି ।୫।

ବଣସାରା ଯେତେ ଯିଏ
ଡକାହୋଇ ଆସିଲେ,
ହସଖୁସି କରି ସବୁ
ପଙ୍ଗତରେ ବସିଲେ ।୬।

ଟିପାଟିପି ଖୁସିହେଲେ
ମନକଲେ ହରଷ,
ମିଳିମିଶି ବାସ କଲେ
ମିଳେ ମିଠା ପରଶ ।୭।





# ଶଗଡ଼ ଚଲେ ମଠେଇ

ବର ଅଠା ଅଠେଇ,
ଶଗଡ଼ ଚଲେ ମଠେଇ ।୧।

ବିରି ମୁଗ ଓଳିଆ,
ପୋଖରୀ ପାଣି ଗୋଳିଆ ।୨।

ନଅ ଆଠ ସତର,
କୋଲି କୋଲିକା ପତର ।୩।

ଚରି ପଞ୍ଚା କୋଡ଼ିଏ,
କିଆ-କେରେଣ୍ଡା ଯୋଡ଼ିଏ । ୪।

ଭେରି ତୂରୀ କାହାଳୀ,
କୁନିଆ ଯିବ ଚହାଳି ।୫।



ରାତି ଅଧିଆ ସପନ,
ମାଛ ଗଣିଲି ଛପନ ।୬।

ଏଗାର ତିନି ଚଉଦ,
ଧୋବ ଧୋବିଲା ବଉଦ ।୭।

ଦୀପ ରୁଖା ପିତଳ,
ନଈରେ ଖେଳେ ଚିତଳ ।୮।

ସରୁ ଧାନ ଅରୁଆ,
ଆରିସା ପିଠା ଗରୁଆ ।୯।

ମୋ ଗୀତଟି ସରିଲା,
ବରଷା ପାଣି ଝରିଲା ।୧୦।

❑❑❑



## କାଠ ଓ କୁଟା

କାଠ ପଗ୍ଭରିଲା କୁଟାକୁ
ତୁ'ଟା କୋଉ ମଣିଷରେ ଗଣା ?
କୁଟା ରାଗି କହେ କାଠକୁ
ତୋର କପାଳରେ ଅଛି ହଣା ।୧।

ଘର ହୋଇ ମୁହିଁ ଦେଖୁନୁ
ତୋର ଉପରେ ଅଛିରେ ରହି,
ଖୁଣ୍ଟସାଜି ସାରା ଜୀବନ
ତୁହି ରହିଅଛୁ ମତେ ବହି ।୨।

ଏତେବେଳେ କାହୁଁ ପବନ
ନେଲା ଉଡ଼ାଇ କୁଟାକୁ ଯେବେ,
କାଠ ହସିହସି ପଗ୍ଭରେ
କିରେ କୁଆଡ଼େ ଯାଉଛୁ ଏବେ ? ।୩।

କାଠ କୁଟା ପରି ତୁଳନା
କେଭେଁ ନୁହଁଇ ଅସଲ କଥା,
ଉଚ୍ଚ ନୀଚ ଭେଦ ବିଚ୍ଛର
ଖାଲି ଆଣିଦିଏ ମନେ ବ୍ୟଥା ।୪।

ଗୁଣ ଅନୁସାରେ କାମଟି
କରିଯିବା ଅଟେ ଧରମ,
ସଂସାର ଭିଆଣ ନୀତିରେ
ଏହି ପରା ସାର ମରମ ।୫।



# ମାଙ୍କଡ଼ ଅନାଏ ବସି

ଡାପଡ଼ ଡାପଡ଼
ଡାଆ ଡାପଡ଼
ଏଣ୍ଡୁଅ ଯାଉଛି ଧାଇଁ,
ଖରା ଖୁସୁରୁକୁ
ପାଣି ଖୁସୁରୁ
ବେଙ୍ଗ ରଡ଼େ ରାଇଁଝାଇଁ ।୧।

ଲପର ଲପର
ଲାଆ ଲପର
ଛକପକ ହୁଏ ପାରା,
ସଂଜ ଝଇଁଆକୁ
ରାତି ଝଇଁଆ
ପେଝ ଡାକେ ଗାଆଁ ସାରା ।୨।





ଥିପିରି ଥିପିରି
ଥାଆ ଥିପିରି
ହାତୀ ଯାଉଛିରେ ଚାଲି,
ପାଣି ଭୁଟୁରୁକୁ
ମାଟି ଭୁଟୁରୁ
ଖସ ଖସ ନଈ ବାଲି ।୩।

ଟରପ ଟରପ
ଟାଆ ଟରପ
ମାଙ୍କଡ଼ ଅନାଏ ବସି,
ଆଖି ଟିମିରିକୁ
କାନ ଟିମିରି
ଖୋଜୁଛି କଖାରୁ କଷି ।୪।

ଚୁପୁରୁ ଚୁପୁରୁ
ଟାଆ ଚୁପୁରୁ
ଗଡ଼ିଶା ଗାଉଛି ଗୀତ,
ଦେହ ସାକମାକୁ
ମନ ସାକମା
କଇଁଛକୁ ଭାରି ଶୀତ ।୫।

## ହସିବ ଟହ ଟହ

ନହନହକା ପତଳା ଦେହ
ଏଡ଼େ ବଳଟେ ପିଲା,
କାହିଁକି ସିଏ ଗୁଷିଲା କହ
କିଆଁ ଏମିତି ହେଲା ।୧।

କିଏ ସେ ତାକୁ କହିଲା କିସ
କଅଣ କଲା କୁହ,
ସେଇ କଥାକୁ ଧରିଛି ସିଏ
ପଣସ କରି ମୁହଁ ।୨।

କଥା କଥାରେ ବସୁଛି ଅଡ଼ି
ଅଲଗା ଥାନ ବାଛି,
ଘରଟା ସାରା ପଡ଼ିଛି ହୁରି
ଖାଇନି ସିଏ କିଛି ।୩।

କହ କାହିଁକି ଗୁଷିଛୁ ବୋଲି
ପଚାରି ଗଲେ କେହି,
ନ କହି କଥା ଡବର ଡବ
ଚାହୁଁଛି ଖାଲି ସେହି ।୪।



ବୁଝରେ ବୁଝ          ପଘର ତାକୁ
କଅଣ ତା'ର ଲୋଡ଼ା,
ଜହ୍ନମାମୁ କି          ସୁନା ଚଢ଼େଇ
ମନପବନ ଘୋଡ଼ା ।୫।

ଅବୁଝା ଯଦି          ହେଉଛି ସିଏ
କହନି କିଛି ତାକୁ,
ରାଗୁଛି ଯଦି          ତାଗିଦ୍ କରି
ଦିଅନି କାନ୍ଦିବାକୁ ।୬।

କୁତୁରୁ କୁତୁ          କରରେ ତାକୁ
ଗପ ଗୋଟିଏ କହ,
ଟିକିଏ ପରେ          ଯିବ ସେ ଭୁଲି
ହସିବ ଟହ ଟହ ।୭।

□□□



# ବେଙ୍ଗୁଲୀ ନାନୀ

ଚୁକୁନା ପତ୍ରରେ
ବେଙ୍ଗୁଲୀ ନାନୀ,
କାହିଁକି ଛାଡ଼ିଛୁ
ପଣତ କାନୀ ।୧।

ଖଇର ପକେଇ
ଖାଇଛୁ ପାନ,
ଝୁମୁକା ହଲେଇ
ଦେଖାଉ କାନ ।୨।

ଯତନେ ସଜାଇ
ବାନ୍ଧିଛୁ ବାଳ,
ବେକରେ ନାଇଛୁ
ପୋହଳା ମାଳ ।୩।



କପାଳେ ଟିକିଲି
ଅଳତା ପାଦ,
ଖୁସିରେ ଛାଡୁଛୁ
ହାକୁଟି ନାଦ ।୪।

କୁଆଡ଼େ ଯାଉଛୁ
ପୋଖରୀ ଛାଡ଼ି,
ଥପର ଥପର
ଯାଉଛୁ ମାଡ଼ି ।୫।

ପାଦ ପକାଉଛୁ
ଡଅର ଡର,
ଯାଉକି' ଭଉଣୀ
କୁଣିଆ ଘର ।୬।

ଯାତରା ଦେଖିବା
ପାଇଁକି ଅବା,
ହାତରେ ଧରିଛୁ
ପାନର ଡବା ।୭।





ଯୁଆଡ଼େ ପଛକେ
ଯାଉଛୁ ଯାଆ,
ଜଗି ରଖି ଯାହା
ଖାଉଛୁ ଖାଆ ।୮।

ବାଟରେ ଚାଲିବା
ବେଳରେ ନାନୀ,
ସଡ଼କ ନିୟମ
ଚଳିବୁ ମାନି ।୯।

ଯାଆ' ତୁ ଭଉଣୀ
ଭଲରେ ଥାଆ,
ବେଙ୍ଗ ରାଇଜର
ଗୁଣ ତୁ ଗାଆ ।୧୦।

❑❑❑



# ପକୁଡ଼ି ବରା

ଉଠାଣି ଗଡ଼ାଣି ଢପର ଢାଆଁ,
ସେଇଠି ସନିଆ ସାହୁର ଗାଆଁ ।୧।

ସନିଆ ତିଆରେ ପକୁଡ଼ି ବରା,
ଯେମିତି ମଉଳେ ଦିନର ଖରା ।୨।

ପିଆଜ ମରିଚ ଧନିଆ ଅଦା,
କୁଚୁରୁ ମୁଚୁରୁ ଥାଳିରେ ଗଦା ।୩।

ପିଠୋଉ ବାଟଣ ପୁଉତୁପୁତୁ,
ଚୁଲିରେ ଜାଳେଣି ହୁଉତୁହୁତୁ ।୪।

ତାତିଲା ଆଞ୍ଚରେ ଚମକେ ତେଲ,
ଏଡ଼େ ଏଡ଼େ ବରା ସତେକି ବେଲ ।୫।

ଆହାକି ବାସନା ମହକ ଭରା,
ସନିଆ ସାହୁର ପକୁଡ଼ି ବରା ।୬।

ମୁସୁରୁ ମୁସୁରୁ ଅଳପ ରାଗ,
ସନିଆ ଗୁଡ଼ିଆ ଜାଣିଚି ବାଗ ।୭।

ଏପଟ ଗାଆଁରୁ ସେପଟ ଗାଆଁ,
ସବୁଠି ସନିଆ ସାହୁର ନାଆଁ ।୮।

ଭେଜାଲ ଜିନିଷ କରେନା ସିଏ,
ଗରମ ଗରମ ପରଷି ଦିଏ ।୯।

ଧନୀ ଲୋକ ବୋଲି ନ ହୁଏ ଗଣା,
ତଥାପି ଗାଆଁଟା ତା' ପାଇଁ ଜଣା ।୧୦।





# ଭାଲୁ ଭାଇନା ଗାଆଁରେ

ଭାଲୁ ଭାଇନା ଗାଆଁରେ,
ଦିନେ ଆପଣା ଛାଆଁରେ ।୧।

ନିଆଁ ଲାଗିଲା ବଣରେ,
ନଈ ସେପଟ କଣରେ ।୨।

ଚଢ଼େଇ ପଶୁ ସକଳ,
ସଭିଏଁ ହେଲେ ବିକଳ ।୩।

ବିଲୁଆ ନନା ଆସିଲା,
କଅଣ ଭାବି ବସିଲା ।୪।

ଧାଇଁଲା ନଈ କୂଳକୁ,
ଲହିଁଲା ଗଛ ମୂଳକୁ ।୫।

ହାତୀ ମଉସା ସେଠେଇ,
ଚାଲୁଛି ଧୀରେ ମଠେଇ ।୬।

ବିଲୁଆ କହେ ମଉସା,
ବୁଡ଼ିଲା ଆମ ବେଉସା ।୭।

ଭାଲୁ ଭାଇନା ଗାଆଁରେ,
ନିଆଁ ଲାଗିଛି ଘରେଁରେ ।୮।

ସେଇଠୁ ହାତୀ ଧାଇଁଲା,
ନଈରୁ ପାଣି ଆଣିଲା ।୯।

ଶୁଣ୍ଢରେ ପାଣି
କେତେ ନା କେତେ,
ଢାଳିଦେଲା ହାତୀ
ଯାହାକୁ ଯେତେ,
ନିଆଁ ଜଳୁଥିଲା
ହୁଉତୁ ହୁତୁ,
ଲିଭି ହେଲା ଏବେ
ଫୁଉତୁ ଫୁତୁ ।୧୦।





# ଗଲା ଶୀତ ବକତ

ଗଲା ଶୀତ ବକତ,
ଖରା ହେଲା ଶକତ ।୧।

ଟାଣ ଖରା ଆସିଲା,
ଧଳା ମେଘ ଭାସିଲା ।୨।

ବିଲବାଡ଼ି ଟୋକରି,
ନଇ ନାଳ ପୋଖରୀ ।୩।

ପାଟ ଯୋର ଗାଡ଼ିଆ,
ସବୁ ଶୁଖି ଖାଡ଼ିଆ ।୪।

ପଶୁ ପକ୍ଷୀ ସକଳ,
ହେଲେ ବଡ଼ ବିକଳ ।୫।

ପାଣି ନାହିଁ ଯହିଁଟି
ପ୍ରାଣ ନାହିଁ ତହିଁଟି ।୬।

ଜଳ ଆମ ସମ୍ପଦ,
ଜଳ ବିନା ବିପଦ ।୭।

# ଘୂରୁଥାଏ ବେଳକାଳ

ଖରା ଗଡ଼ିଯାଏ
　　　　ଦିନ ଗଡ଼ିଯାଏ
ସଂଜ ନଈଁଆସେ ଥିରି,
　　　　ଟିକି ଟିକି ତାରା
ମିଟିକା ମାରନ୍ତି
　　　　ଆକାଶର ଛାତି ଚିରି　　।୧।

ରାତି ସରିଯାଏ
　　　　ଅମା ଲୁଚିଯାଏ
ଆକାଶେ ଚହଟେ ନାଲି,
ଲାଲ୍ ଟମ୍ ଟମ୍
　　　　ସୂରୁଜ କିରଣେ
　　　　ସୁନା ହୁଏ ନଈ ବାଲି　　।୨।





ରବି ଉଇଁ ଆସେ
ଜହ୍ନ ଉଇଁ ଆସେ
ମେଘ ହୁଏ ଗାଉ ଗାଉ,
ବରଷା ପବନ
ବିଜୁଳି ବତାସ
ଦେଖାଅନ୍ତି କେତେ ଭାଉ ।୩।

ଗଛ ବଢୁଥାଏ
ଲତା ବଢୁଥାଏ
ବଢୁଥାଏ ଫୁଲ ଫଳ,
ପାଣି ଫୁଲୁଥାଏ
ନଈ ଫୁଲୁଥାଏ
ଘେରିଯାଇ ଜଳ ଥଳ ।୪।



ଫୁଲ ଝଡ଼ିଯାଏ
ଫଳ ଝଡ଼ିଯାଏ
ଭାଜି ପଡ଼େ ଗଛଡାଳ,
ଝରି ଝରି ଯାଏ
ଗଛରୁ ପତର
ଅସରନ୍ତି ମାଳ ମାଳ ।୫।

ଦିନ ସରୁଥାଏ
ରାତି ସରୁଥାଏ
ସରୁଥାଏ ବର୍ଷ ମାସ,
ଦିନରାତି ମେଳ
ଛଅ ଋତୁ ଖେଳ
ଚାଲିଥାଏ ଅହର୍ନିଶ ।୬।

ଚକ ଘୂରୁଥାଏ
ଅଖ ଘୂରୁଥାଏ
ଘୂରୁଥାଏ ବେଳ କାଳ,
କିଏ କେଉଁଠାରେ
ଅଟକି ରହେନା
ପିଲାଦିନ ଛୋଟ ବେଳ ।୭।

ପାଠ ସରିଯିବ
ପଢ଼ା ସରିଯିବ
ଆଉ ନ ଆସିବ ଫେରି,
ଥରେ ବଡ଼ହେଲେ
ପିଲାଦିନ କଥା
ରହିବ ମନକୁ ଘେରି ।୮।





# ଲାଲ୍‌ଟୁପାଇଁ ସୁଏଟର

ମାଇଁ ବୁଣିଥିଲେ ସୁଏଟରଟିଏ
ଲାଲ୍‌ଟୁ ପାଇଁ,
ଚାରି ମାସ ଧରି ରାତିଦିନ ଲାଗି
ବିରାମ ନାଇଁ ।୧।

ନାଲି ଚିହିଚିହି ଗୋଡ଼ିବାଣ ପରି
ରୁମୁରୁମିଆ,
ରୋକି ପାରିବ ସେ ହେଉପଛେ ଶୀତ
କଣକଣିଆ ।୨।

ଛାତି ଉପରକୁ ଯତନରେ ବୁଣା
ଗୋଲାପ ଫୁଲ,
ତୋଫା ଧଳାରଙ୍ଗ ଦାଉଦାଉ ଦିଶେ
ନାହିଁ ତା' ତୁଲ ।୩।



ବୁଣା ଘଲୁଘଲୁ ମାଇଁ କହୁଥାନ୍ତି
ସରାଗ ଭରେ,
ଏବେ ଆସିଯିବ ଧାନକଟା ଛୁଟି
ମାସକ ପରେ ।୪।

ହେଲେ ସୁଏଟର ତଥାପି ସରୁନି
ତୁଟୁନି କାମ,
ମାମୁଘର ଗାଆଁ ଛୁଟିରେ ଆସିବ
ଲାଲଟୁ ଆମ ।୫।

ଦୁଇ ବରଷରେ ଥରେ ଆସିବାକୁ
ମିଳୁନି ତର,
ଦୂର ପରବାସେ ରହିଛନ୍ତି ଯାଇ
ଲାଲ୍‌ଟୁ ଘର ।୬।

ଯେତେହେଲେ ସିଏ ଘରର ଭଣଜା
ପୁଅଠୁ ବଳି,
ଥରେ ବରଷକେ ନ ଆସିଲେ ଲାଗେ
ଅଚିହ୍ନା ଭଳି ।୭।

ପାଞ୍ଚ ବରଷର ହୋଇଥିଲା ସିଏ
ପିଛିଲା ଥର,
କେତେ ବଡ଼ ଏବେ ହୋଇଯିବଣି ସେ
କେତେ ଉଚ୍ଚର ।୮।

ଶେଷହେଲା ଶେଷେ ସ୍ୱଏଟର ବୁଣା
ହସିଲେ ମାଇଁ,
ନିଜ ହାତ କାମ ଦେଖି ସେ ଖୁସିରେ
ରହିଲେ ଚାହିଁ ।୯।

ଛୁଟି ଆସିଗଲା ଲାଲଟୁ ଆସିଲା
ବୋଉକୁ ଧରି,
ଦିନ ଗୋଟିକରେ ଜିଣିଲା ସଭିଙ୍କୁ
ନିଜର କରି ।୧୦।

ଦୁଇଦିନ ପରେ ଲାଲଟୁକୁ ଡାକି
କହିଲେ ମାଇଁ,
ନିଅ ଏଇଟିକୁ ବୁଣା ହୋଇଅଛି
ତୁମରି ପାଇଁ ।୧୧।



ନୂଆ ସୁଏଟର ଦେହରେ ଗଳାଇ
ଲାଲଟୁ ଯେବେ,
ଆସି ଠିଆହେଲା ହସିଦେଲେ ଦେଖି
ସଭିଏଁ ଏବେ ।୧୨।

ଗଞ୍ଜି ପରି ତାହା ଲାଖି ଯାଇଥିଲା
ଛୋଟିଆ ହୋଇ,
କେମିତି ଅବା ସେ କାଢ଼ିବ ତାହାକୁ
ରହିଲା ରହି ।୧୩।

ଅଜା ହସିଦେଲେ ମାମୁ ହସିଦେଲେ
ହସିଲେ ଆଇ,
ଲାଜ ସରମରେ ନ ରହି ସେଠାରେ
ଲୁଚିଲେ ମାଇଁ ।୧୪।





''ମିଠା ଗୀତ''ର ଗୀତଗୁଡ଼ିକ କାନ ଓ ମନ ଉଭୟ ପାଇଁ ମଧୁର । ଏ ମଧୁରତା କିନ୍ତୁ ପ୍ରତି ପାଠକ ପାଇଁ ଭିନ୍ନ ଭିନ୍ନ । ଚିନି, ଗୁଡ଼, ମହୁ, ନବାତ ଏସବୁ ମିଠା । ମାତ୍ର ସବୁ ମିଠାପଣ କ'ଣ ଗୋଟିଏ ପ୍ରକାରର ? ମିଠା ପିଜୁଳି ଓ ମିଠା ସେଓ ଭିତରେ କେତେ ନା କେତେ ଫରକ । ସେମିତି ଗୀତରେ ଥିବା ମିଠାପଣ, ଏ ଗୀତରେ ଯାହା ଅଛି ସେ ଗୀତରେ ନ ଥାଇପାରେ । ସାହିତ୍ୟର ଯେ କୌଣସି ବିଭାବରେ ସେଇ କଥା ଅଛି । ତେବେ ଏ ସଂକଳନର ଗୀତଗୁଡ଼ିକ ପିଲାମନରେ ଯେ ନୂଆ ନୂଆ ମିଠାପଣ ଭରିବା ଲାଗି ଉଦ୍ଦିଷ୍ଟ ସେ କଥା ଯେ କୌଣସି ପାଠକ ଅନୁଭବ କରିପାରିବେ ।

ଦାଶ ବେନହୁର, ଓଡ଼ିଆ ସାହିତ୍ୟର ଏକ ଜଣାଶୁଣା ନାମ । ଶିଶୁ-କିଶୋର ମାନଙ୍କ ପାଇଁ ଲିଖିତ ତାଙ୍କର ପ୍ରତିଟି ସୃଷ୍ଟିରେ ଉଭୟ ଆନନ୍ଦ ଓ ଆଲୋକର ସମ୍ମିଶ୍ରଣ ବେଶ୍ ମନଛୁଆଁ । ବାଳୁତ ଜୀବନର ବିସ୍ତାରିତ ସବୁଜ ଇଲାକାରେ ଉଙ୍କିମାରୁଥିବା ଅସୁମାରି ପ୍ରଶ୍ନ ହିଁ ତାଙ୍କ ଲେଖକୀୟ ବାସ୍ତବତାକୁ ପ୍ରେରଣା ପ୍ରଦାନ କରେ ।

ସାଂପ୍ରତିକ ଠିକଣା:
''କଥାକାର'', ୬ମ-୧୬୧, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧




କାଞ୍ଚନ, ଗଜପତି ନଗର,
ସୁତାହାଟ, କଟକ-୭୫୩୦୦୧

ISBN 978-81-86475-62-1